# ଜୀବନ-ତରଙ୍ଗ ।

" And let who will be clever.
Do noble things—not dream them all day long.
And so make Life, Death, and the vast forever
One grand, sweet song."

Kingsley



ଶ୍ରୀଦୀନବନ୍ଧୁ ଗଡନାୟକ
ପ୍ରଣୀତ ।



ହିତୈଷିଣୀ ଇଲେକ୍ଟ୍ରିକ୍ ମେସିନ ପ୍ରେସରେ
ମୁଦ୍ରିତ ।

ବାମଣ୍ଡା ।

୧୯୧୨

ମୂଲ୍ୟ ଏକ ଅଣା ମାତ୍ର ।

"ଅର୍ଦ୍ଧଂ ଭାର୍ଯ୍ୟା ମନୁଷ୍ୟସ୍ୟ, ଭାର୍ଯ୍ୟା ଶ୍ରେଷ୍ଠ ତମଃ ସଖା,
ଭାର୍ଯ୍ୟାମୂଳଂ ତ୍ରିବର୍ଗସ୍ୟ ଭାର୍ଯ୍ୟାମୂଳଂ ତରିଷ୍ୟତଃ" ।

ସୁଖେ ଦୁଃଖେ ସ୍ୱଦେଶେ ବିଦେଶେ
ଗୃହ କାର୍ଯ୍ୟେ ଧର୍ମ୍ମ କାର୍ଯ୍ୟେ
ମୋର ଚିର ସଙ୍ଗିନୀ
ସହଧର୍ମ୍ମିଣୀ
ଶ୍ରୀମତୀ ଯଶୋଦା
ନାମରେ
ଏହି
'ଜୀବନ ତରଙ୍ଗ'
ଉତ୍ସୃଷ୍ଟ
ହେଲା ।

ଶ୍ରୀ ଦୀନବନ୍ଧୁ ଗଡନାୟକ

# ଜୀବନ-ତରଙ୍ଗ ।

( ୧୯୦୪ ଖ୍ରୀଃ ରେ ଲିଖିତ )

---

## ଶୈଶବ ତରଙ୍ଗ ।

କନକବରଣ ନବଜାତ ପ୍ରାଣୀ
ମୃଦୁଲ ଶିଶୁର ତନୁ,
ମନ-ପ୍ରାଣ ଲୋଭା ସ୍ୱର୍ଗୀୟ ପ୍ରତିମା
ଦେଖି ନ ଭୁଲଇ ମନୁ ।
ପିତା ମାତା ଦୁଃଖ ପାସୋରି ସେ ଧନ,
ଜଗତର ଯେତେ ଧନ,
ହୀରା ନୀଳା ଆଦି କଲେ ଏକଠୁଳ
ନହେବ ତାହୁଁ ତୁଳନ ।
ଭାବୁକ ଜନର ଭାବରସ ସେତା
ଦେବଙ୍କ ଅମୃତାଧାର ,
ଚିଦାନନ୍ଦ ମୟ ପ୍ରିୟ ଦରଶନ
ଯଥା ପୂର୍ଣ୍ଣ ଶଶଧର ।

ସ୍ୱଚ୍ଛ ଗଣ୍ଡସ୍ଥଳ ଗୋଲାପ ସମାନ
ସମୁଜ୍ଜ୍ୱଳ ଅଭ୍ରନ୍ୱିତ ,
ପଦ୍ମଶ୍ର ସୁନ୍ଦର ଧନ୍ୟ ଗୁଚ୍ଛ ଶିଶୁ
ବୃଷ୍ଟ କରୁ ଅଲୌକିକ ।
ତାମରସ ରାଗେ ରଞ୍ଜିତ ଚରଣ
କଜ କମଳ ଉଭୟ ,
ଅର୍ଦ୍ଧାଂଶ ଉଦତ ଯଥା ବାଲ ଭାନୁ
ରଞ୍ଜଇ ଜନ ହୃଦୟ ।
ଯାହା ସଦନରେ ନଖରୁ ଦରଛ
ଭାଗ୍ୟହୀନ ସେହି ଜନ,
ତାହା ନୟନରେ ବୃଥା, ଜଗତର
ଅଇଶ୍ୱର୍ଯ୍ୟ , ସିଂହାସନ ।
ବାରେକ ଗର୍ଜ୍ଜିଲେ ତୋହର ଆନନ
ସଂସାରର ଦୁଃଖ ଭାର ,
ହୋଇ ବହୂରତ ଆରମ୍ଭିଲେ ଅହା
ଆନନ୍ଦ ହୁଏ ସଞ୍ଚାର ।
ଅମିୟରୁ ବଳି ତୋହାଙ୍କ ବଚନ
ପୁଲକେ କର ଶ୍ରବଣ ,

ମୋ ମାନସ ସର୍ଗେ- କରେ ଫୁଟି ଥାଏ
ସ୍ୱର୍ଗୀୟ ଦିବ୍ୟ ସୁମନ ।
ଦ୍ୱେଷ, ହିଂସା ପର- ଶୂନ୍ୟ ତୋ ହୃଦୟ
ଐଶ୍ୱରୀ ଜ ପ୍ରେମେ ଲୟ,
ତୋହର ପ୍ରେମରେ ଅବଦ୍ଧ ଜଗତ
ତୋ ଲୀଳା ଆନନ୍ଦ ମୟ ।
ଅନେକ ଆୟାସେ ନପାଆନ୍ତି ଲୋକେ
ଯେଉଁ ନିର୍ବିକାର ଭାବ,
ତୋ ହୃଦୟ ପୂର୍ଣ୍ଣ ସେଥି ସାଧୁଭାବେ
ନ ଗଣୁ ହାନି ଲାଭ ।

## ବାଲ୍ୟ ତରଙ୍ଗ ।

ବହୁ ପୁନାଗତ ବାଲ୍ୟକାଳ ସୁଖ
ନହେ ହେଲେ ଜାଗରୁକ,
ଭାବଇ ମନରେ ଥିଲେ ସଦୁପାୟ
ହୁଅନ୍ତି ପୁଣି ବାଳକ ।
ସ୍ୱାଧୀନ ବିହଙ୍ଗ ଉଷା କାଳେ ଯଥା
ଅଶଙ୍କା ନରଖି ମନେ
ଗାଇ ଗାଇ ଗୀତ ସ୍ୱଚ୍ଛନ୍ଦେ ବନରେ

ଲତା ପାଦପ ଗଗନେ ।
ସେମନ ବାଳକ ସଂସାର-ଭାବନା-
ଚକ୍ର ବହୁଦୂରେ ରହି,
ହରଷିତ ଚିତ୍ତେ ଥାଇ କ୍ରୀଡ଼ାସକ୍ତ
ବାଲ୍ୟ ସମୟ କାଟଇ ।
ଆତ୍ମୀୟ ଅପର ଲୋକର ବେଭାର
ଚକ୍ଷୁ ଆଦର୍ଶ ପାଇ,
ସ୍ୱାଭାବିକ ଗୁଣେ ଦେଖିକି ସେପରି
ଅନ୍ତର ଶିଖୁଥାଇ ।
ଶିକ୍ଷା ଗୁଣ ଦୋଷେ ଭବିଷ୍ୟତ କାଳ
ସୁଖ ବା ଦୁଃଖ ଅର୍ଜିତ,
ସେ ପବିତ୍ର କାଳ କେତେ ବାଳକର
ଅବା ହୁଏ କଳଙ୍କିତ ।
କମ୍ପାମାଟି ପାତ୍ରେ ଯଥା ରେଖାବଳୀ
ତରଙ୍ଗ ଚିତ୍ରିମାନ,
କୋମଳ ସରଳ ବାଳକ ହୃଦୟେ
ଶିକ୍ଷାହିଁ ରହେ ଅକ୍ଷୁଣ୍ଣ ।
ମଳୟ ପବନ ପାଇ ବାରମ୍ବାର

ଚନ୍ଦନ ବୃକ୍ଷ ପାଲଟେ ,
ସନ୍ତାନ ଶିକ୍ଷିତ　　ହୁଅଇ ସତ୍ୱରେ
ପିତା ମାତାର ଆକଟେ ।
ସୁଶିକ୍ଷା ପ୍ରଭାବେ　　ଘୁଚ ଅନ୍ଧକାର
ପଥ ହୁଏ ଆଲୋକିତ ,
ପ୍ରତିଭା ପ୍ରଦୀପ　　ହୃଦୟ ପ୍ରକୋଷ୍ଠେ
ତେଜରେ ହୋଇ ପ୍ରଜ୍ୱଳିତ ।
ସଂସାର ସମର-　　କ୍ଷେତ୍ରେ ଜୟ ଅଣେ
ବିଦ୍ୟା-ବୁଦ୍ଧି ତରବାରି ,
ଯୋଗ୍ୟ ପିତା , ସୁତେ　　କରିବାକୁ ଯୋଗ୍ୟ
ଦିଅନ୍ତି ଯତନ କରି ।
ଏହି ବାଲ୍ୟକାଳ　　ଗୁଣ କୁସୁମର
ସେନା ବିକାଶ ସମୟ ,
ବିକାଶର ଅନ୍ତେ　　ଭଲ ଅବା ମନ୍ଦ
ସହଜେ ହୁଏ ନିର୍ଣ୍ଣୟ ।
ଋଷୀ ମାନଙ୍କର　　କଷ୍ଟ ସାଧ୍ୟ ବ୍ରତ-
ପରି ବିଦ୍ୟା ଶିକ୍ଷାକାଳ,
ଅବିଶ୍ରାନ୍ତ ଯତ୍ନ　　ବିନା ନ ମିଳଇ

କେବେ ହେଁ ବାଞ୍ଛିତ ଫଳ ।
ଧନୀ ମଣ୍ଡନରେ  ନମିଳେ ରଞ୍ଜନ
ବିଦ୍ୟା ଅଟେ ଶ୍ରେଷ୍ଠ ଧନ ,
ଦାନେ ଚନ୍ଦ୍ର ବୃଦ୍ଧି  ଅଖଣ୍ଡ ଅକ୍ଷୟ
ନକରେ ଚୋର ହରଣ ।

## ଯୌବନ ତରଙ୍ଗ ।

ବସନ୍ତାଗମନେ  ଫୁଲ-ମଧୁ ପାଇଁ
ଯଥା ମତ୍ତ ଅଳିକୁଳ ,
ଯୌବନ ଆରମ୍ଭେ  ନରନାରୀ ଗଣ
ସୁଖ ସ୍ୱପନେ ବିହ୍ୱଳ ।
ତରଙ୍ଗ ପୂରିତ  ମହାର୍ଣ୍ଣବ ପରି
ହୃଦୟ ଉଦ୍ଭ ପୁଲ୍ଲିତ ,
ହୃଦୟ କାନନ  ଆଶା କୋକିଳର
ନିକ୍କଣରବେ ମୁଖରିତ ।
ସୁଜଳା ସୁଫଳା  ଶ୍ୟାମଳା ଅବନୀ-
ଶ୍ରେଷ୍ଠ ରାଜ-ସିଂହାସନେ ,
ସୁଖେ ବସିସତେ  ମହୋତ୍ସବେ ମାତି
ବିଷଣ୍ଣ ନୁହଇ କ୍ଷଣେ ।

ରକ୍ତ ଘେଛେ ନଚେଇ    ନାଡ଼ିକୁ ମଣଇଁ
ଧରା ମଧ୍ୟେ ଶୂରବୀର ,
ଗର୍ବେ ଭାବେ "ଗିରି    କରି ପାରେ ଧୂଳି
ଚରଣ କରି ପ୍ରହାର ।
"ସୁବିଶାଳ ଧରା    ଶରୀର ସମାନ
ତୃଣସମ ସର୍ବନର ,
"ତର୍ଜ୍ଜନ ଗର୍ଜ୍ଜନ    ଭଙ୍ଗିରେ ଯଥେଷ୍ଟ
କରିପାରେ ଅଧିକାର । "
ସମ୍ପଦ ମଦରେ    ନିରନ୍ତର ମତ୍ତ ,
ସମ୍ପଦ ପ୍ରଧାନ ଗୁରୁ ,
ଅଗସ୍ତି-ପିପାସା    ନିବୃତ୍ତି କାରଣ
ଫିଙ୍ଗିଚି ଶାନ୍ତି ମନରୁ ।
ପବିତ୍ର ଧରମ    ଆର୍ଯ୍ୟ ଋଷିଗଣ
ଦେଇ ଯେଉଁ ଉପଦେଶ ,
ସ୍ୱ ସ୍ୱ ଜୀବନରେ    ଦେଖାଇ ସଫଳ
ଲଭୁଥିଲେ ପୂର୍ଣ୍ଣଯଶ ।
ସେ ଧର୍ମ୍ମ ତରୁର    ଛାୟାତଳେ ବସି
ଶୀତଳ କର ଜୀବନ ,

ପରମ ସୁଖରେ ନିର୍ବିକାର ଭାବେ
କରୁଥିଲେ ଅବସ୍ଥାନ ।
ନାହିଁ ସେ ଧରମ ନାହିଁ ପାପ ଭସ୍ମ
ନାହିଁ ସେ ପବିତ୍ର ସୁଖ ,
କୃତ୍ରିମ ସୁଖରେ କରି ପ୍ରଣିଧାନ
ଡାକି ଆଣେ ଘୋର ଦୁଃଖ ।
ବଚନ-ଶୃଙ୍ଖଳ- ନାଗରୀ ବନ୍ଧାଇ
ଉଡାଇ ଦେଶ ନିଶାଣ ,
ମାନବ ନିସ୍ବନେ ନିକ୍ଷେପି ବାଲୁକା
ସଭ୍ୟତା କରେ ପ୍ରମାଣ ।
ଭଣ୍ଡବକ ପରି ସାଧୁତା ଭାବ-
ଧରି କରେ ପ୍ରତାରଣା ,
ଧର୍ମ୍ମ ଆଡମ୍ବର ଛଳ ଠେକି କେବେ
କରଇ ସ୍ୱାର୍ଥ ସାଧନା ।
ଅକାଶ ପାତାଳ କରି ଆଲୋଡନ
ଯତ୍ନ କରି ପ୍ରାଣପଣେ ,
ତରଙ୍ଗ ନାଡ ଲଙ୍ଘି ନିଃଶଙ୍କରେ
ଲଜ୍ଜା ନ ଦେନଇ ମନେ ।

ନୈତିକ ନିୟମ　　ଲୁହାର ଶୃଙ୍ଖଳ
　　ବୋଧେ କରି ଛିନ୍ନ ଭିନ୍ନ ,
ମହାଜନ ପଥ　　ଭୁଲି , କୁପଥରେ
　　କରଇ ସଦା ଭ୍ରମଣ ।
ନିଜ ଅଭିମତେ　　ଅଣିବାକୁ ନରେ
　　କୁତର୍କ ଜାଲ ବିସ୍ତାରି ,
କୋଷାଘାତ ପ୍ରାୟ　　ଯେ ଲାଗେ ପଢ଼ଣ
　　ନିଜେ ପାଏ ଦୁଃଖ ଭାରି ।
ସଂସାର ସର୍ବସ୍ୱ　　ଯୁବା ପାରତ୍ରିକ
　　ସୁଖେ ହୋଇ ସନ୍ଦିହାନ ,
ପାର୍ଥିକ ସୁଖରେ　　ମାତି ଦିବାରାତ୍ର
　　ଉପେକ୍ଷେ ସମାଜ-ବିଧାନ ।
ଇନ୍ଦ୍ରିୟ ବାସନା　　ଚରିତାର୍ଥ ପାଇଁ
　　ହୁଏ ସଦା ଲାଳାୟିତ ,
ବାସନା ଅନଳ　　ବାସନା ଆହୁତି
　　ଯୋଗେ ହୁଏ କି ଦମିତ ?
ଦର୍ଶନ ଲାଲସା　　କରିବାକୁ ପୂର୍ଣ୍ଣ
　　ଦେଖି ଦୀପ୍ତ ହୁତାଶନ ,

ନବୁଝି ପତଙ୍ଗ ପଡ଼ି ତଥିମଧ୍ୟେ
ଅକାଳେ ଦିଏ ଜୀବନ ।
କର୍ଣ୍ଣତୃପ୍ତିକର ମିଷ୍ଟ ବଂଶୀଧ୍ୱନି
ଅଦୂରେ କରି ଶ୍ରବଣ,
ଅଜ୍ଞାନ କୁରଙ୍ଗ ଶରେ ହୁଏ ବଧ
ନବୁଝି ବ୍ୟାଧ-ରଚନ ।
ଗନ୍ଧାମୋଦେ ଅନ୍ଧ ମିଲିନ୍ଦ ମରନ୍ଦ
କରୁଁ କରୁଁ ଅନ୍ୱେଷଣ,
ସାୟଂକାଳେ ପଦ୍ମ ମଧ୍ୟେ ରହି ଅନ୍ତ
ନକରେ ପ୍ରତ୍ୟାଗମନ ।
ସମ୍ମୁଖ ଉଗ୍ର ରସନା-ଲାଳସା
ସହଜେ ନୁହେ ଦମନ,
ଆହାର ସଙ୍କାଶେ ବଡ଼ଶ କଣ୍ଟକେ
ଗଳାନ୍ତୁ ହୁଅଇ ମୀନ ।
ଗାଢ଼ ସଂଘର୍ଷଣେ ପାଇ ମହା ସୁଖ
ନବୁଝି ସ୍ୱାଧୀନ କରୀ,
ସୁଦୃଢ଼ ଶୃଙ୍ଖଳେ ହୋଇ ବନ୍ଧନ
ମରେ ପୂର୍ବ ସୁଖସ୍ମରି ।

ଏକପ୍ରଭୁ ଯୋଗେ <ତେକ ଦୁର୍ଦ୍ଦଶା
ପଞ୍ଚେନ୍ଦ୍ରିୟ ଯାର ପ୍ରଭୁ ,
ଲଗଇ ହସ୍ତସ୍ୱ ନପାଏ ସେ ଭୟ
ଅଗ୍ରେ ଦେଖି ଦୁଃଖ ସିନ୍ଧୁ ।
ହିଂସା , ପ୍ରବଞ୍ଚନା , ମିଥ୍ୟା , ଉଚ୍ଛୃଙ୍ଖଳ
ପରର ଧନ ହରଣ ,
ପର ସ୍ତ୍ରୀକାତର, ପରଘାତୀ ହୋଇ
ଯୁବକ ଜନ-ଭୂଷଣ ;
ହକାର ଜଡ଼ତ ହେଗିପଡ଼ ସଦା
ଦେଖି ନାନା ପ୍ରହେଳିକା ,
ଜାଗ୍ରତ ସ୍ୱପନ ଦେଖୁ ଦେଖୁ ପଡ଼-
ଯାଏ ଶେଷ ଯବନିକା ।
କାମାଧୀନ ଦୁଷ୍ଟ ରକ୍ଷା ଦଶାନନ
ସ୍ୱର୍ଣ୍ଣଲଙ୍କା ଅଧୀଶ୍ୱର ,
ଯେଉଁ ଲଙ୍କାପାଇଁ ନୀଳ ପାରିବାର
ପ୍ରୀତ କରେ ନିରନ୍ତର ।
ଅଳଙ୍କାର ଧନ ମଣି ମୁକ୍ତାମାଳ
ସର୍ବ ସାଙ୍ଗେ ସାଉ ସାଉ ,

ନନ୍ଦନ କାନନ ଜିଣି ଉପବନ
ଶୋଭେ ଯହିଁ ହ୍ରଦ ବଟ ।
ପୁତ୍ର ମେଘନାଦ ଯା ଧନୁ ଟଙ୍କାର
ବଜ୍ର ବଳ ଭୟଙ୍କର ,
ଲଙ୍କାପୁରୀ ସୀମା ସ୍ପର୍ଶ କରିବାକୁ
କମ୍ପେ ଇନ୍ଦ୍ର କଳେବର ।
ସର୍ଣ୍ଣକୁଳ ରତ୍ନ ନାରୀ କମଳିନୀ
ରଘୁଲକ୍ଷ୍ମୀ ବଇଦେହୀ ,
ଯା ଦର୍ପଣ ନାମ ଗାଇ ଅଦ୍ୟାବଧି
ଅଛନ୍ତି ଅମର ହୋଇ ।
ପାପୀ ରକ୍ଷନାଥ ହରି ସେ ବୈଦେହୀ
ସହସ୍ର ମିତ୍ର ଗଣ ,
ଅଚ୍ଛ ଶୋଚନୀୟ ଅକାଳ ମୃତ୍ୟୁକୁ
ଆଦରେ କଲା ବରଣ ।
ସୁରାସୁର ନର ଯେ ବଂଶ ପ୍ରତାପେ
ସବୁ ବେଳେ ସଶଙ୍କିତ ,
ବନ୍ଧୁବନ୍ଧୁ ପ୍ରତି ବୈରି ଭାବ ଧରି
ହେଲା କାଳ କବଳିତ ।

ଯାହାଙ୍କ ପାଦାଙ୍କେ    ଫୁଟେ ସ୍ୱର୍ଣ୍ଣପଦ୍ମ
ଲୋଭୀ ରାଜା ଦୁର୍ଯ୍ୟୋଧନ ,
ସୂଚ୍ୟାଗ୍ର ପ୍ରମାଣ,    ପଣ୍ଡୁ ପୁତ୍ର ଗଣେ
ମୃତ୍ତିକା ନକର ଦାନ ;
ଯୁଦ୍ଧଙ୍କର ପଣ    ଶତ ଭ୍ରାତା ସହ
ଭୋଗି ନାନା ନିର୍ଯ୍ୟାତନ ,
ମଉ ଭୀମହସ୍ତେ    ହରାଇଲେ ସବୁ
ରାଜ୍ୟ , ଜନ , ସିଂହାସନ
ସୁନ୍ଦ , ଉପସୁନ୍ଦ    ତିଳୋତ୍ତମା ପ୍ରତି
ଉଭୟେ ହୋଇ ମୋହିତ ,
ପରସ୍ପର ଯୁଦ୍ଧେ    ପରସ୍ପରେ ନାଶି
ସ୍ୱରଗ ହେଲେ ପତିତ ।
ଘୋର ମଦେଅନ୍ଧ    ହିରଣ୍ୟକଶିପୁ
ବୈଷ୍ଣବ ଧର୍ମ୍ମ ନାଶନେ ,
ଏକମାତ୍ର ସୁତ    ସୁଜ୍ଞାନୀ ପ୍ରହ୍ଲାଦେ
ଫିଙ୍ଗିଲେ ହୁତାଶନେ ;
ନାନାଦି କୌଶଳେ    ପ୍ରାଣେ ମାରିବାକୁ
ସଦା ଉତ୍କଣ୍ଠିତ ପ୍ରାଣ ,

ନରସିଂହ ହସ୍ତେ ମଲ, ନପାରିଲା
ରକ୍ଷିବାକୁ ନିଜ ମାନ ।
ଦିବାକର ସୁତ କର୍ଣ୍ଣ ବୀରବର
ଦେଖି ପାର୍ଥ ପରାକ୍ରମ,
ନିଜ ପରାକ୍ରମ ସମେ କରି ଜ୍ଞାନ
ଇର୍ଷାନଳେ ହେଲେ ଧ୍ୱଂସ ।
ଯେଉଁ ଷଡରିପୁ ମାନବର ଛିଦ୍ର
କରୁଥାନ୍ତି ଅନ୍ୱେଷଣ,
ତାସଙ୍ଗେ ବନ୍ଧୁତା କରେ ଯେ ମାନବ
କେବଳ ଲଭେ କ୍ଷରଣ ।
କି ଭୀଷଣ ଦୃଶ୍ୟ! ଅତ୍ୟନ୍ତ ପ୍ରବଳ
ଆଶା ଜୀବଣର ଚିତା,
କ୍ଷଣ୍ଟୃ ଇନ୍ଧନ ସହଯୋଗେ ହୁଏ
ଧୂ ଧୂ ଶବ୍ଦେ ପ୍ରଜ୍ୱଳିତା ।
ତ୍ରିଷ୍ଣୃ କୁମ୍ଭୀର ବଦନ ବ୍ୟାଦାନ
କରି ଅଛି ନିରନ୍ତର,
ଆନନ୍ଦ ବାୟୁକି ମଣି ତଥି ମଧ୍ୟେ
କ୍ରୀଡାରତ ନାଗିନର ।

ପାପ ପ୍ରବର୍ତ୍ତକ ଦୁଷ୍ଟ ଶମ୍ଭୃତାନ
ଦେଖାଇଣ ପ୍ରଲୋଭନ,
ମନ୍ଦ ମନ୍ଦନ୍ତର ପଥେ ଘେନି ଯାଇ
ସ୍ୱକାର୍ଯ୍ୟ କରେ ସାଧନ ।
ଲଙ୍କାମଧ୍ୟେ ଯଥା ସାଧୁ ବିଭୀଷଣ;
ସତ୍ୟ ଧର୍ମ ପରାୟଣ,
କ୍ଷୀରବ ସାଗରେ ସୁମ୍ଭଟ ବହୁର
ପିନା ଅମୂଲ୍ୟ ରତନ ।
କେ ଜାଣେ ଅନେକ ମଧ୍ୟେ ଜଣେ ସାଧୁ-
ଭାବେ କରେ କାଳକ୍ଷୟ,
କାଳ ପ୍ରଭାବରେ ଅତୀବ ଦୁର୍ଘଟ
ମିଳିବା ତା ପରିଚୟ ।

---

## ବାର୍ଦ୍ଧକ୍ୟ ତରଙ୍ଗ ।

(କବିବର ମାଇକେଲଙ୍କ ପଦ୍ୟର ଅବଲମ୍ବନରେ ଲିଖିତ)

ହାୟରେ ଅଦୃଷ୍ଟ ! ବାଲ୍ୟ କ୍ରୀଡାସୁଖ
ନିମିଷେ ହେଲା ଅତୀତ,
ଦେଖୁଁ ଦେଖୁଁ ଥିବା ଯୌବନ କୁସୁମ

କାଳଙ୍କଠେ ବନ୍ଦୀଭ ।

ବାର୍ଦ୍ଧକ୍ୟ ଶଙ୍କଠେ ଅଟେତ୍ ଦେଖିଲ
ପଦଚନ୍ଦ୍ର ପୁରାତନ ,
ରପୁ ଅଶ୍ୱଟଣ ନୂଦନ୍ତ ଅଧୀନ
ହୁଦସ୍ତ ଅକ୍ଷ ଭଗନ ।
ଯତନେ ଗଢ଼ିଲ ଅଟ୍ଟାଳିକା ଏକ
ମଣି ରତନେ ସଜ୍ଜିତ ,
ମେଘ ଶୂନ୍ୟନର୍ଁ ଭସ୍ମଙ୍କର ବଜ୍ର
ପଡ଼ତା ହେଲା ଚୂର୍ଣ୍ଣିତ ।
ଗୋଲାପ ମଲ୍ଲିକା ଯୂଥିକା ଚମ୍ପକେ
ନିର୍ମାଣିଲ ପୁଷ୍ପାରଣ୍ୟ ,
ବ୍ୟତରୁ ଏକ ସେଥି ସଙ୍ଗେ ବଢ଼ି
ଶେଷେ କଲା ଅକର୍ମଣ୍ୟ ।
ଅଶା ବୈତରଣୀ ନଦୀ ଜଳ-ସ୍ରୋତେ
ଗ୍ରହଦେଲ ମନତରୀ ,
ନପାଇଲ କୂଳ ନୈରାଶ୍ୟ ଅନ୍ଧାରେ
ରହୁଅଛୁ ଅନ୍ଧପଡ଼ି ।
ସୁନ୍ଦର ସରସୀ ମଧ୍ୟେ ବଢ଼ିଭ

କମଳେ ହୋଇ ମୋହିତ ,
ତୋଳିବାକୁ ଯାଇ   ବିଷମ ମୃଣାଳ
କଣ୍ଟକେ ହେଲ ଛଡ଼ତ ।
ସଂସାରେ ଯାହାଙ୍କୁ   ମଣନ୍ତି ସର୍ବସ୍ୱ
ବକ୍ଷୁରେ ସେ ପ୍ରହାରଇ ,
ଅହା କି ଆଶ୍ଚର୍ଯ୍ୟ   ବିଧାତାର ଖେଳା
କିଛି ମାତ୍ର ନବୁଝଇ ।

## ଜ୍ଞାନ ତରଙ୍ଗ ।

କର୍ମ୍ମ ଅନୁସାରେ   ହୁଅନ୍ତି ସଂସାରେ
ସୁର ବା ଅସୁର, ନର ,
ରସାଳୁ ରସାଳ   ଜମ୍ବୁଁ ହୁଏ ଜମ୍ବୁ
ବୀଜ ଅନୁରୂପ ଫଳ ।
ଭକ୍ତି ସଦ୍ଭାବରେ   ଧର୍ମ୍ମ ବିଶ୍ୱାସରେ
ମିଳଇ ଜ୍ଞାନ ଉଜ୍ଜ୍ୱଳ ,
କର୍ତ୍ତବ୍ୟ ସାଧନେ   ଯଥୋଚିତ ଧନ
ସଙ୍ଗେ ଯଶ ନିରମଳ ;
ଅକପଟ ପ୍ରେମେ   ବନ୍ଧୁ ପ୍ରାଣ ସମ,
କ୍ଷମା, ସଭ୍ୟତା, ସଂଯମ,

ଦାରିଦ୍ର୍ୟ, ଦୃଢ଼ତା   ପରକାଳ ଦୁଃଖ
ମୂଳୁ କରନ୍ତୁ ଛେଦନ ।
ସାର ପଥ ଅଷ୍ଟ   କଟେ ଦୂର କଷ୍ଟ
ଶୁଦ୍ଧ ଦୃଷ୍ଟି ନିରମଳ ,
ପୁଣ୍ୟ, ସତ୍ୟବାକ୍ୟ   ସୁସଙ୍କଳ୍ପ, ସାଧୁ–
ଉପଜୀବିକା ବିମଳ ।
ଶୁଦ୍ଧ ସ୍ମୃତି ରହନ୍ତି,   ନିଶ୍ଚଳ ଶାଶ୍ୱତ
ଧ୍ୟାନ, ସାଧୁ ବ୍ୟବହାର ,
ଅତରେ ଯେତନ   ପ୍ରକୃତି ଉନ୍ନତ,
ଅଟନ୍ତ ହିଁର ତାହାର ।
ଅବଚ୍ଛିନ୍ନ ଭାବେ   ସ୍ଥୂଳ, ସୂକ୍ଷ୍ମରୂପେ
ଦୃଶ୍ୟାଦୃଶ୍ୟ ରୂପାନ୍ତରେ ,
ଖେଚର, ଭୂଚର   ଚରାଚର ବସ୍ତୁ
ସର୍ବତ୍ର ବ୍ୟାପ୍ତ ଈଶ୍ୱରେ ।
ସତତ ମାନସେ   ଏହି ଜ୍ଞାନ ଯାର
ନଜରେ ପାପାନୁଷ୍ଠାନ ,
ଧୀର, ଶାନ୍ତଚିତ୍ତ   ଅଟେ ସେ ନିଶ୍ଚୟ
ନର ମଧ୍ୟେ ପ୍ରଜ୍ଞାବାନ ।

ଗର୍ବ, ଅହଂକାର- ଶ୍ୱାପଦ ସଙ୍କୁଳ
ଏହି ବିଷମ୍ୟ କାନନ,
ଅତି ମନୋହର- ଇନ୍ଦ୍ରଜାଲେ ଯେଣୁ
ଦେଖି ଚମକଇ ମନ ।
ସତ୍ତ୍ୱ, ରଜ, ତମ ରୂପୀ ତରୁଗଣ
ଗୃହପାଶେ ବିସ୍ତାରିତ,
ସୁଖଦୁଃଖ ପୁଣ୍ୟ ପଦାର୍ଥ ଅଗଣ୍ୟ
ହୃଦୟ ଭବେ ସଞ୍ଚିତ ।
ବଣିକର ବେଶେ ଧନାର୍ଥୀ ମାନବ
ଲଭିବାକୁ ବହୁଧନ,
ଦେହ ଯାନେ ବୁଦ୍ଧି ସାରଥି ସହିତେ
କରନ୍ତି ତହିଁ ଗମନ ।
ବଳବାନ ରିପୁ ଅତି ଷଡରିପୁ
କ୍ଷୀଣ ସାରଥିକୁ ଜାଣି,
ବିପୁଳ ବିକ୍ରମେ ଲୁଣ୍ଠି ଧର୍ମଧନ
ବଣିକେ ଦିଅନ୍ତି ତାଡ଼ି ।
ପରିଣାମେ ନିଜ ଗୁପ୍ତ ମନ୍ଦକାର୍ଯ୍ୟ
ଗୋଟି ଗୋଟି ପଡ଼ିମନେ,

କ୍ଷୁଦ୍ର ହୃଦୟ ହୁଅଇ ହଦସ୍ତ
ଅନୁତାପ-ହୁତାଶନେ ।
ମନ୍ଦକାର୍ଯ୍ୟ ଯେତେ କ୍ଷଣିକ ମଧୁର
ଶେଷଫଳ କଷ୍ଟମୟ,
କାର୍ଯ୍ୟକାଳେ କିଏ ଥିଲା କେଉଁ ପରି
ଶେଷେ ମିଳେ ପରିଚୟ ।

## ମୃତ୍ୟୁ ତରଙ୍ଗ ।

କରାଳ କୁଟିଳ ମୃତ୍ୟୁ ତରଙ୍ଗିଣୀ
ଧଈ ବେଗ ଭୟଙ୍କର,
ଭୀଷଣ ଆବର୍ତ୍ତେ ସାଧୁ, ଧନୀ, ଦୀନ
ମଗନ କରେ ସକଳ ।
ନମାନି ନିଷେଧ ନିରୁଦ୍ଦେଶ୍ୟ ପଥେ
ଚାଲଇ ଆପଣା ମନେ,
ସେ ପଥେ ପଥିକ ହୋଇ ଶକ୍ତିହୀନ
ଭୁଲଇ ଆତ୍ମୀୟ ଜନେ ।
ଯାହାର ସ୍ମରଣେ ଜଡ଼ବତ ଅଙ୍ଗ
ଭୟରେ ବଧିର ମନ,
ଯାହାର ଶ୍ରବଣେ ପାପ ନିଶାଚର

ଶୀଘ୍ର କରେ ପଳାୟନ ।
କ୍ଷୁଦ୍ର ଜୀବ ନର  ସୁରମ୍ୟ ବିଷୟ-
କାନନେ କରେ ଭ୍ରମଣ
ନଜାଣେ ବସିଛୁ  ଲୁଚି ମୃତ୍ୟୁ ସିଂହ
ବ୍ୟାଦାନ କରି ବଦନ ।
ପାତ୍ରବାରି ଜଳେ  ଯାହୋଇ ସ୍ୱତନ୍ତ୍ର
ଲଭଇ ନଦୀ ଜଳସ୍ତୁ ,
ଯଥା ମହାକାଶେ  ମିଶି ଘଟାକାଶ
ହୁଅଇ ଅକାଶ ମୟ ।
ଜୀବନ ନଳିନୀ-  ଦଳ-ଜଳପରି
ଚଞ୍ଚଳ , କ୍ଷଣି ମଧ୍ୟରେ ,
ଛାଡ଼ି ଏସୁନ୍ଦର  ଅନିତ୍ୟ ଶରୀର
ନଫେରେ ଆଉ ଭ୍ରମରେ ।
ଇହ ପରକାଳ  ମଧ୍ୟସ୍ଥଳେ ଥାଇ
ସର୍ବଗ୍ରାସୀ ମୃତ୍ୟୁ ନଦୀ ,
ସକଳ ପ୍ରାଣୀ  ଆପଣା ଗର୍ଭରେ
ଲୁଚାଏ କରିଣ ବନ୍ଦୀ ।
ନାଟ୍ୟ ଶାଳାପରି  ସଂହାର ସଦନେ

ନରେ ଗେଲ ନାନାସ୍ୱବେ,
ମୃତ୍ୟୁ ଯବନକା ହେଲେ ନିପତିତ
ଯାଆନ୍ତି ଚୁଲି ଖାରବେ ।
ନରହିଇ ମାୟା ନରହିଇ କାୟା
ରହିବ ସିନା କର୍ମ ଫଳ,
କର୍ମ କ୍ଷେତ୍ରେ ଯାର ଅଛିବ ସୁନାମ
ଜନମ ତାର ସଫଳ ।

ସମାପ୍ତ ।

Printed by D. Gar nayak,
The Hitaishini Electric Machine Press
Bajnra

ପୃଷ୍ଠା
୧୨



ଅଶୁଦ୍ଧ ଶୁଦ୍ଧ
ବକ୍ର ବୃକ୍ଷ